ଜଗନ୍ନାଥ ଦାସଙ୍କ କୃତ

# ଅର୍ଥ କୋଇଲି

ଶ୍ରୀ ଜଗନ୍ନାଥ ସିଂହଙ୍କ ଦ୍ୱାରା

ନୂତନ ପ୍ରକାଶିତ



ପ୍ରାପ୍ତିସ୍ଥାନଃ—

**ଓଡ଼ିଶା ଜଗନ୍ନାଥ କମ୍ପାନି**
**ଶ୍ରୀ ଜଗନ୍ନାଥ ସିଂହ**
**ବାଲୁବଜାର ପୋ: ଚାନ୍ଦନୀଚୌକ**
**କଟକ**

ମୂଲ୍ୟ ୪ ୦ ୵ ତନିଅଣା ମାତ୍ର

# ଅର୍ଥ କୋଇଲି

କୋଇଲି କେଶବ ଯେ ମଥୁରାକୁ ଗଲା ।
କାହାବୋଲେ ଗଲା ପୁତ୍ର ବାହୁଡ଼ି ନଇଲା ଲେ ।

ଅର୍ଜୁନ ଉବାଚ

ଅର୍ଜୁନ ବୋଇଲେ ତୁମ୍ଭେ ଶୁଣ ମହାବାହୁ । ପୁଚ୍ଛିବି କଥାଏ ପ୍ରଭୁଂ ମୋତେ ଆଜ୍ଞା ହେଉ ॥ କେଶବକୋଇଲି ନାଥ କାହାକୁ ଯେ କହୁ । ଏହା ମୋତେ ଶ୍ରୀହରି ପ୍ରସନ୍ନେ ହେବା କହୁ ॥

ଶ୍ରୀ ଭଗବାନୁବାଚ

ପାର୍ଥର ବଚନେ ଯେ ବୋଲନ୍ତି ଭଗବାନ । ଉତ୍ତମ କଥାଏ ପାର୍ଥ ପଚାରିଲୁ ପୁଣ ॥ କୋଇଲି ବୋଲୁଣ ପାର୍ଥ ଜୀବକୁ ଟି କହୁ । ସେହୁ ଜୀବ ମୁହିଁ ଜାଣ ସର୍ବେ ଅଛଇ । ଆପେ ଆସି-ଥିଲା ଜୀବ ଆପେ ଚାଲିଗଲା । ସେହୁ ପୁତ୍ରଗୋଟି ଆଉ ବାହୁଡ଼ି ନ ଇଲା ॥ ଏହୁ ପୁତ୍ର ଗୋଟି ଯହୁଁ ବାହୁଡ଼ି ନଇଲା । ମାଟି ସ୍ୱରୂପ ପିଣ୍ଡ ପଡ଼ିଣ ରହିଲା ॥

କୋଇଲି ଖଣ୍ଡକ୍ଷୀର ଦେବି ମୁଁ ତାହାଙ୍କୁ
ଖାଇବାର ପୁତ୍ର ଗଲା ମଥୁରାପୁରକୁ ଲେ ॥

ପୁଣ ପୁଣ ଅର୍ଜ୍ଜୁନ ଯେ ଚରଣେ ପଡଇ । ଆବର କଥାଏ ମତେ କହ ଭବଗ୍ରାହୀ ॥ ଖଣ୍ଡ କ୍ଷୀରକଥା ମୋତେ କହ ଭଗବାନ । ଶ୍ରୀହରି କହନ୍ତି ଏହା ଶୁଣ ହେ ଅର୍ଜ୍ଜୁନ ॥ ପିଣ୍ଡରେ ଥାଇଣ ଜୀବ ମହାସୁଖପାଇ । ଅନ୍ତର ହୋଇଣ ପୁନଃ ଅନ୍ୟ ସ୍ଥାନ ଯାଇ ॥ ଆକାଶେ ମିଶିଣ ଜୀବ ଅନ୍ୟପିଣ୍ଡେ ଗଲ ହରିରସ ଖଣ୍ଡକ୍ଷୀର ଏ ଅର୍ଥ ହୋଇଲା ॥ ଶୁଣିକରି ଅର୍ଜ୍ଜୁନ ହୋଇଲ ତୋଷମନ । ପୁଣ ପୁଣ କୃଷ୍ଣ ଆଗେ କହଇ ବଚନ

କୋଇଲି ଗଲା ପୁଣ ବାହୁଡ଼ି ନଇଲା ।
ଗହନନ୍ତ ବୃନ୍ଦାବନ ଶୋଭା ନ ପାଇଲା ଲୋ ॥

ଗହନନ୍ତ ବୃନ୍ଦାବନ କାହାକୁ ଯେ କହି । ଏକଥା ବିସ୍ତାରି ମୋତେ କହ ଭବଗ୍ରାହୀ ॥ ଅର୍ଜ୍ଜୁନ ମୁଖକୁ ଚାହିଁ କମଳ-ଲୋଚନ । ଯାହା ପଚାରିଲୁ ଶୁଣ ପାଣ୍ଡୁର ନନ୍ଦନ ॥ ଗହନ ବୋଲିଣ ପାର୍ଥ ଜୀବକୁଟି କହି । ଗୋପପୁର ଦେହ ଗୋଷ୍ଠୀ ଶୋଭା ପାଉନାହିଁ ॥ ପିଣ୍ଡକୁ ପରମ ଯହୁଁ ଛାଡକରି ଗଲା । ତେଣୁକରି ପିଣ୍ଡ ଗୋଷ୍ଠୀ ଭୂମିରେ ପଡ଼ିଲା ॥ ଏମନ୍ତ ପ୍ରକାରେ ପାର୍ଥ ଗ ଅକ୍ଷର ଅର୍ଥ । ଏକମନେ ଶୁଣ ତୁହେ ପାଣ୍ଡୁରାଜା ସୁତ ॥

କୋଇଲି ଘର ମୋର ନ ଦଶନ୍ତି ନନ୍ଦ ।
ଘଟଣ ନ ଦିଶେ ପୁର ନ ଥିଲେ ଗୋବିନ୍ଦ ଲୋ ॥

ଘର ବୋଲିକରି ପାର୍ଥ ଯାହାକୁଟି କହି । ପାର୍ଥର ପିଣ୍ଡରେ ହସ୍ତ ଦେଲେ ଭବଗ୍ରାହୀ । ପରମ ଜୀବର ଅର୍ଥ ଶୁଣ ଫାଲ୍‌ଗୁନୀ ଶାସ୍ତ୍ରର ବଚନ ତୋତେ କହିବା ଏହିଣି ॥ ଘଟଣ ପୁରୁଷ ଯହୁଁ ଛାଡ଼ିକରି ଗଲା । ନନ୍ଦ ଯେ ପରମ ତହୁଁ ନିଷ୍ଫଳ ହୋଇଲା ॥ ଜୀବ ଥିବାଯାଏ ପିଣ୍ଡଶୋଭା ପାଉଥାଇ । ଘଟଣ ପୁରୁଷ ଗଲା ଆସିବାକୁ ନାହିଁ । ପରମକୁ ଜୀବ ଯହୁଁ ଘେନି ଚଳି ଗଲା । ତେଣୁ କରି ଘର ଗୋଟି ଅଶୋଭା ଦିଶିଲା ॥

କୋଇଲି ନନ୍ଦ ଦେହ ପାଷାଣେ ଗଢିଲି ।
ନୟନେ କଜ୍ଜ୍ୱଳ ଦେଇ ଉଠେ ବସାଇଲି ଲୋ ।

ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ଜଗନ୍ନାଥ । ନନ୍ଦ ଦେହ ବୋଲି କର କାହୁଁ ହେଲା ଜାତ ॥ ଅର୍ଜ୍ଜୁନ ବଚନେ ଯେ ବୋଲନ୍ତି ଭଗବାନ । ନନ୍ଦ ଦେହ ବୋଲି ପାର୍ଥ ଦେହକୁଟି ଜାଣ ॥ ଏ ଜୀବର ହୁଡ଼ ଯହିଁ ଅନ୍ତସ୍ଥେ ଗଲା । ନିର୍ଗୁଣ ହୋଇଣ ଅଜ ବାହୁଡ଼ ନଇଲା ॥ ଯେତେବେଳେ ପିଣ୍ଡରୁଟି ଜୀବ ଛାଡ଼ି ଯାଇ । ତେବେ ନୟନରୁ ଅଶ୍ରୁ ଯାଉଥାଏ ବହି ॥ କଜ୍ଜ୍ୱଳ ବୋଲିଣ ତାକୁ ଶାସ୍ତ୍ରେ ଅଛି କହି । ପୁଣ ପୁଣ ଅର୍ଜ୍ଜୁନ ଯେ ଦଇମା କରଇ ॥

କୋଇଲି ଚଳୁଥାଇ କଟିସ୍ଥ ମେଖଳୀ ।
ଚକିତ ହୋଇଲେ ଶୁଣି ଗୋପପୁର ବାଳୀ ଗୋ ॥

ଅର୍ଜ୍ଜୁନ ବଚନ ଶୁଣି କମଳଲୋଚନ । ଯାହା ପଚ୍ଛିଲ ଶୁଣ ପାଣ୍ଡୁରନନ୍ଦନ ॥ ପିଣ୍ଡରେ ପରମ ଯେତେବେ ଲୀଳା କରୁଥାଇ । ନିଷ୍କଳ ହୋଇଣ ପିଣ୍ଡଚନ୍ଦ ଚଳୁଥାଇ । ପରମକୁ ଯେନ ଯହିଁ ଜୀବ ଚଳିଗଲା । ଯନ୍ତ୍ରମାନ ନିଷ୍କଳ ଯେ ହୋଇଣ ରହିଲା ॥ ପୂର୍ବେ ଚଳୁଥିଲା ପିଣ୍ଡୁ ଜୀବ ଆଶ୍ରାପାଇ । ପଦେ ପଦେ କର ଶୁଣ ସୁଭଦ୍ରାର ସାଇଁ ॥

କୋଇଲି ଛାଟେକ ମୁଁ ମାଇଲି ପୁଅକୁ ।
ଛାଡକରି ଗଲା କୃଷ୍ଣ ମଥୁରାପୁରକୁ ଲୋ ॥

ସ୍ୱଚ୍ଛନ୍ଦହୋଇଣ ଜୀବ ଛାଡ଼ିକରି ଗଲା । ଷଢରେ ପଡ଼ିଣ ମୋହ ମାୟାକୁ ଛାଡ଼ିଲା । ଛାଟେକ ପ୍ରକୃତି ପାର୍ଥ ପିଣ୍ଡ ମଧ୍ୟେ ଥାଇ । ଛାଡ଼ିକରି ଗଲାଜୀବ କ୍ଷୋଭମନ ହୋଇ ॥ ପୂର୍ବକଥା ବର୍ଣ୍ଣିଣ ଗଲା ନିଜପୁରୀ । ଅର୍ଜ୍ଜୁନ ଆଗରେ ଏହା କହିଲେ ଶ୍ରୀଧର ॥

ଏମନ୍ତ ପ୍ରକାରେ ପାର୍ଥ ଛଅଙ୍କର ବାଣୀ । ଶାସ୍ତ୍ରର ବଗୁର ଏହା ମିଥ୍ୟା ନୋହେ ପୁଣି ॥

ବୋଇଲି ହୃଦଯଣେ ଅଇଲା ଅକ୍ରୂର ।
ଯାହାବୋଲି ଭଣ୍ଡି ନେଲା ବସାଇ ରଥର ଲୋ ॥

ଜୀବଗଲେ ପରମ ଯେ କ୍ଷଣେ ନ ରହଇ । ହୃଦଯଣେ ବେଲି ପାର୍ଥ ପରମକୁ କହି ॥ ଯାହା ଏ ଯେ ଖେଳଘର ସଂସାର ଅଟଇ । ଅକ୍ରୂର ବୋଲଣ ପାର୍ଥ ମୃତ୍ୟୁଟି ବୋଲଇ । ରଥନବୋଲି କହି ଯାହା ପଚ୍ଛିଲୁ ପାର୍ଥ । ଜୀବଗଲେ ପିଣ୍ଡଟି ହୁଅଇ ଭୂମିଗତ ॥

ବୋଇଲି ସଙ୍କୁଳୁ ସଙ୍କୁଳୁ ଲଢ଼ ନ ରହିଲା ॥
ସଂଗଡ଼ା ସାଙ୍ଗେଣ କୃଷ୍ଣ ମଥୁରା ରହିଲା ॥

ପୁଣ ପୁଣ ଅର୍ଜୁନ ସେ ଚରଣେ ପଡ଼ଇ । ସଙ୍କୁଅଛୁ କେଉଁ ସ୍ଥାନ କହ ଭାବଗ୍ରାହୀ ॥ ଜୀବକୁ ନ ଦେଖିଣ ପ୍ରକୃତ ସଙ୍କୁଥାନ୍ତି । ସଂଗଡ଼ା ସଂସାର ଗୋଟି ଗୁଡ଼ିକର ଯନ୍ତ୍ର । ସଂଗଡ଼ା ସଂସାର ପାର୍ଥ ପଚ୍ଛିଲୁ ଯେତେ । ପଦ ପଦ କରି ଏବେ କହିଦେଲି ତୋତେ ॥

ବୋଇଲି ନଣାକାଳେ ହରି ମାଗେ ଗୃହ ।
ନୟନ ଟେକିଣ ତାକୁ ଗ୍ରହଥାନ୍ତି ନନ୍ଦ ଲୋ ॥

ନଣାକାଳ ବୋଲି ପାର୍ଥ ଚକ୍ଷୁଟିକ କହି । ଗୃହ ବୋଲି ପରମାନନ୍ଦଘର ସେହି ॥ ନନ୍ଦ ଯେ ପରମାର୍ଥ ବାମଚକ୍ଷୁକୁ ଜାଣ । ନୟନ ବୁଜିଲେ ଯେ ଅନ୍ଧାର ଦିଶେ ତେଣୁ ॥ ନଣାକାଳେ ଅର୍ଥ ଶୁଣ ପାର୍ଥ ମନଦେଇ । ଯାହା ପଚ୍ଛିଲୁ ପାର୍ଥ ଯୁଧିଷ୍ଠିର ଭାଇ ॥ ଶୁଣି କରି ଅର୍ଜୁନ ହୋଇଲା ତୋଷମନ । କାର୍ପଣ୍ୟ ହୋଇଣ ପୁଣି ପୁଚ୍ଛଇ ବଚନ ।

କୋଇଲି ଝଡ ଝଡ ହସୁଥାନ୍ତି ବୋଲେ ।
ଝଲ ଝଲ ହେଉଥାନ୍ତି ଫୁଲବାର ବେଳେ ଲୋ ॥

ଝଲ ଝଲ ଚକ୍ଷୁ ପାର୍ଥ ନାସାକୁଟି କହି । ଟୀକ ରହିଅଛି ଜୀବ ଗୁଡ଼ ପିତାପାଇଁ ॥ ତ୍ରିକୂଟ ମଧ୍ୟରେ ଝଙ୍କାରଙ୍କ ଅସ୍ଥାନ । ସେଠାକୁ କହଇ କୋଳ ବୋଲି ହେ ଅର୍ଜୁନ ॥ ଉହୁଁର ଉପରେ ହଟ୍ଟଚୋଲ ଯେ ବାଜଇ । ପରମକୁ ଦେଖି ଜୀବ ଶୂନ୍ୟରେ ରହଇ ॥ ଝଲ ଚକ୍ଷୁ ନୟନ ଯେ ଶୂନ୍ୟ ଅନ୍ଧକାର । ଝଲିଣି ଦଶବପିଣ୍ଡ ହୋଇଣ ଅନାସ୍ତ ॥

କୋଇଲି ଠଣ ଠପ ସୁନ୍ଦର ନେହା ଦେଖାଏ ।
ଠକ ତଣ୍ଡି ଗଲେ ବୃକ୍ଷ ନଇଁଲେ ବହୁଧାଏ ଲୋ ॥

ଠଅ ଅକ୍ଷରର ଅର୍ଥ ଶୁଣ ଫାଲଗୁନ । ଶାସ୍ତ୍ରରେ ବିଧାନ ହୋଇଛି ବୁଝିଇବା ପୁଣି ॥ ଠଣ ଯେ ସୁନ୍ଦର ଜୀବ ପରମକୁ କହୁ । ବାନ୍ଧିଣ ନଇଲେ ସେ ଯେ ଅନ୍ୟ ସାହା ପାଇ । ଠଣ ଦେଖ ଗୋଠା ପାର୍ଥ କ୍ଷଣକରେ ଯିବ । ଶୁଣିକରି ଅର୍ଜୁନ ଯେ କଲେ ବହୁ ସ୍ତବ ॥

କୋଇଲି ଡାକଲେ ଭ୍ରଷଇ ଯେତେହେ ଶସ୍ୟ ।
ଡାଳ ରହି ଶୁଆ ପର ଭାଷୁଥାନ୍ତି ହରି ଲୋ ॥

ଅର୍ଜୁନ ବଚନ ଶୁଣି କମଳଲୋଚନ । ଡାଳରହି କଥା ଭୁଞ୍ଜେ ଶୁଣସି ଅର୍ଜୁନ । ଗୃହଡାଳ ଏ ପିଣ୍ଡକୁ ଆବୋରି ରହିଛି । ଏ ଦ୍ୱାର ମଧ୍ୟରେ ଜୀବ ଭ୍ରମଣ କରୁଛି । ପଞ୍ଜରା ଭିତରେ ଯେହ୍ନେ ଶୁଆପକ୍ଷୀ ଥାଇ । ପିଣ୍ଡରେ ପରମଜୀବ ସେହିମତ ହୋଇ ॥ ଶୁଣିକରି ଅର୍ଜୁନ ହୋଇଲେ ତୋଷଚିତ୍ତ । ଡ ଅକ୍ଷର ଅର୍ଥ କହିଦେଲ ଗୋପୀନାଥ ॥

କୋଇଲି ଢଳ ଢଳ ନୟନେ କଜ୍ଜ୍ୱଳ ।
ଢଳଇ ନାସାରେ ମୋତି ମାଣିକ୍ୟର ଫଳ ଲୋ ॥

ଚଳ ଢଳ ବୋଲି ପାର୍ଥ ଭୁଲିଛାକୁ କହୁ । ମୋତିବର ବେନି ଚକ୍ଷୁ ଚଳ ଢଳ ହୋଇ ॥ ଚକ୍ଷୁର ଲୋତକ ଧାର ନିଙ୍ଗିଥାଇ ବହୁ । କଜ୍ଜ୍ୱଳ ବୋଲିଣ ତାହା ଶାସ୍ତ୍ରେ ଅଛି କହୁ ॥ ଚଳିଣି ପଡ଼ିବ ଜୀବ ଝଣକ ଭିତର । ଚ ଅକ୍ଷର ଅର୍ଥ ଶୁଣ ପଣ୍ଡୁର କୁମର ॥

କୋଇଲି ଅନେକ ହିଂସିଲି ସପ୍ତ କଂସ ।
ଅଣହେଲା କଲେଣି ଆପଣେ ଗଲି ନାଶ ଲୋ ॥

ଅଣଅପୃହରେ ଜୀବ ହୋଇଛି ବନ୍ଧନ । କଂସପୁର ଶୂନ୍ୟ ପାର୍ଥ ହେତୁଙ୍କର ଜାଣ ॥ ଅଣହେଲା କଲେ ଜୀବ ଷଣକରେ ଯିବ । ତେଣୁ କଂସ ଆପଣେ ଯେ ବ୍ୟର୍ଥ ହୋଇବ ॥ ଅଣହେତୁ କରଣେ ଯେ ପିଣ୍ଡ ନାଶ ଯାଇ । ଅଲେଖ ପୁରୁଷ ଗଲେ ପାଇବୁ ତୁ କାହିଁ ॥ ଅଣଅକ୍ଷରର ଅର୍ଥ ଶୁଣି ବୀରମଣି । ଆନନ୍ଦେ ଗଦଗଦ ହୋଇ ଯୋଡ଼େ ବେନି ପାଣି ॥

କୋଇଲି ତନୁରେ ତା ଲିପିଲି କୁଙ୍କୁମ ।
ତନୟ ଖେଳାଉଥାନ୍ତି ଭାଇ ବଳରାମ ଲୋ ॥

ବୈକୁଣ୍ଠସ୍ଥାନରେ ପୁଣି ହଂସ ଖେଳୁଥାଇ । ତ୍ରିବେଣୀ ଶିଖରୁ ନୀର ଆସୁଥାଇ ବହୁ । ତଳକୁ ଖସିଣ ବ୍ରହ୍ମମୂଳେ ଯେ ରହଇ । ତନୁ ତାର କୋମଳ ଯେ କ୍ଷଣକରେ ଯାଇ ॥ ବଳରାମ ପରମ ଯେ ଜୀବକୁ ଖେଳାଇ । ଯାହା ପଚାରିଲୁ ଶୁଣ ଯୁଧିଷ୍ଠିର ଭାଇ ॥

କୋଇଲି ଅନଭଙ୍ଗି କ୍ଷୀର ପାନ ଦେଲି ।
ସ୍ଥିବର କାଳକୁ ପୁନ୍ଦ ଦେଖି ନ ପାରିଲି ଲୋ ॥

ଅକାଧର ସ୍ଫୁରଣ ଯେ ଅନ୍ୟସ୍ଥାନେ ଯିବ । ଥଲ ଯେ ସେ ମୋର ନାମ ବ୍ୟର୍ଥ ହୋଇବ ॥ ସ୍ଥିବର ଯେ ବୁଢ଼ାକାଳ ଯହୁ

ଘୋଟିଗଲା । ସ୍ଥାନଭଗ୍ନ କରି ଜୀବ ଶୂନ୍ୟରେ ରହିଲା ।। ଥକା ଘର ସିନା ପାର୍ଥ କ୍ଷଣକରେ ଯିବ । ସ୍ଥିବର ହୋଇଣ ଜୀବ କାହିଁ ନ ବହିବ ।। ଥ ଅକ୍ଷର ଅର୍ଥ ଯାହା ପରୁଛିଲ ବୀର । ପଦ ପଦ କରି କହୁ ଦେଲଛି ନିକର ।।

କୋଇଲି ଦଉଡ଼ରେ ବାନ୍ଧିଲି ପୁନିଲୁ ।
ଦାମୋଦର ସଙ୍ଗେ ଗଲେ ମଥୁରା ପୁରକୁ ଲୋ ।।

ଦଉଡ଼ି ବୋଲିଣ ମାୟା ସଂସାର ଅଟଇ । ଦାମୋଦର କୃଷ୍ଣ ମୁହିଁ ପିଣ୍ଡ ମଧ୍ୟେ ଥାଇ । ପରମ ବୋଲଇ ଅଟା ମୋତେ ମାନକରି । ପୂର୍ବ ଗୁଣ ସୁମରି ଯେ ଗଲା ଛାଡି କରି ।। ମଥୁରା ଯେ ଶୂନ୍ୟସ୍ଥାନ ସେ ସ୍ଥାନେ ରହିଲେ । ଜୀବ ଯେ ପରମ ଦୁହେଁ ଏକତ୍ର ହୋଇଲେ ।। ଶୁଣିକରି ଅର୍ଜୁନ ଯେ କହଇ ଦଇମା । ଦ ଅକ୍ଷର ଅର୍ଥ କହିଦେଲ ଦୟାମଣି ।।

କୋଇଲି ଧନ୍ୟ ସେହୁ ଦଇବକୀ ନାରୀ ।
ଧର୍ମଥିଲା ପୁଅ ଗୋଟି ହୋଇଲା ଛାହାରି ଲୋ ।।

ଧର୍ମ ପଦ ଦେନ ଜୀବ ପିଣ୍ଡରେ ରହିଲା । ଧରଣୀରେ ପଡ଼ି ସଦଜ୍ଞାନ ହରାଇଲା ।। ଧର୍ମରେ ଲେଉ ଜୀବ ଅଧର୍ମରେ ଯାଇ । ଧ୍ରୁବ ଏ ଚରିତ୍ର ମିଥ୍ୟା ନ ମଣ ଯେ ତୁହି ।। ଯେଉଁଅଡ଼େ ଧର୍ମନାଶ ସେହୁ ଅଡ଼େ ଯାଇ । ଅର୍ଜୁନ ଆଗରେ ଏହା କହିଲେ ବୁଝାଇ ।।

କୋଇଲି ନିର୍ଗୁଣ କରିଣ କୃଷ୍ଣ ଗଲେ ।
ନିଜଗୃହ ବାସ ବୋଲି ବେଢାଏ ନଇଲେ ଲୋ ।।

ନିର୍ଗୁଣ ହୋଇଣ ଜୀବ ଛାଡ଼ିକରି ଗଲା । ନିଜଘର ଗୋଷ୍ଠା ତେଣୁ ଅଶୋଭା ଦିଶିଲା ।। ନିରାକାର ପୁରୁଷ ଏହାର ଖେଳ

ପର । ଅତ୍ୟନ୍ତ ଦୁର୍ଲଭ ପିଣ୍ଡ ମାନବ ଶରୀର ।। ନିର୍ମଳ ଶରୀର ଗୋଟି ନଷ୍ଟଳ ହେଇଲା । ଶ୍ରୀହରି କହିଲେ ଏହା ଅର୍ଜୁନ ଶୁଣିଲ । ଶୁଣି କରି ଅର୍ଜୁନ ହୋଇଲା କୃତକୃତ । ପ ଅକ୍ଷର ଅର୍ଥ କହିଦେଲ ଗୋପୀନାଥ ।।

କୋଇଲି ପବନ ପୁରୁଷ ମୋ ମାଠଧାଇ ।
ପବନ ମୁଁ ହେଉଥିଲି କୃଷ୍ଣମୁଖ ଗୁହିଁ ଲୋ ।।

ପବନ ପୁରୁଷ ବୋଲି ମହାମନ୍ତ କହି । ପୁଣ୍ୟ ଦ୍ୱାର ବୋଲି ପାର୍ଥ କର୍ଣ୍ଣ ପେ ଦେଇ ।। ଅପବନ ପିଣ୍ଡ ପାର୍ଥ ପବନ ହୋଇଲା । ଏଣୁ କରି ମହାମନ୍ତ କର୍ଣ୍ଣରେ କହିଲା ।। ପରମାନନ୍ଦ ପୁରୁଷ ମୁହିଁ ଅଟଇ । ପଦେ ପଦେ କରି ଶୁଣ ଯୁଧିଷ୍ଠିର ଭାଇ ।।

କୋଇଲି ଫଳିବାକୁ ଆଶା ନାହିଁ ମୋର ।
ଫଳିବାର ଫଳ ଗଲା ବସୁଦେବ ପୁର ଲୋ ।।

ଏ ବୃକ୍ଷର ଫଳ ପାର୍ଥ ହରିରସ କହି । ଜୀବଗଲେ ଫଳମାନ ବଅର୍ଥ ହୁଅଇ ।। ବସୁଦେବ ବୋଲି ପାର୍ଥ ମୁଖଗୋଟି କହି । ପରମ ଜୀବର ଯିବା ବାଟ ଅଟଇ ସେହି । ହେନ ମଧ୍ୟେ ଜୀବ ପରମର ପୁଣି ପଥ । ପଦ ପଦ କରି ଛୋଟେ କହିଦେବା ପାର୍ଥ ।। ବ୍ରହ୍ମଜ୍ଞାନ ଶୁଣି ପାର୍ଥ ଗ୍ଲାଉଲା ବରସ । ପୁଣି ହୁଁ କୃଷ୍ଣଙ୍କୁ ଗୁହିଁ ହୁଅଇ ହରଷ ।।

କୋଇଲି ବହୁତ ସହିଲି ତାଙ୍କ ଅଳି ।
ଚଢ଼ାଇ ଶରଧା ଭାଙ୍ଗି ଗଲେ ବନମାଳୀ ଲୋ ।।

ବ୍ରହ୍ମାବିଷ୍ଣୁ ଥାଇଣ ଏ ପିଣ୍ଡକୁ ଗଢ଼ିଲେ । ବଳଗର୍ବି ବୋଲିଣ ଏହାର ନାମ ଦେଲେ ।। ବହୁଅଛି ନିବେଣୀଟି ଏହି ବୃକ୍ଷପର । ସେହି ରସ ପିଉଛନ୍ତି ଭକତ ମୋହର ।। ବଙ୍କନାଳ ସଳଖରେ

ଗୋଲା ହାଟପୁର । ମିଶିଛନ୍ତି ବ୍ରହ୍ମାବସ୍ତୁ ନିକୁଟ ମଝର ॥ ଏ ବୃକ୍ଷଫଳ ସରିଲେ କେହି ନ ରହନ୍ତି । ଅର୍ଜୁନ ଆଗରେ ଏହା ଶ୍ରୀହରି କହନ୍ତି ।

କୋଇଲି ଭଣ୍ଡିମୋତେ ଗଲେ ବେନିଯୋଏ ।
ଭାଇ ତାଙ୍କ ବଳରାମ ନଇଲେ ବେଢ଼ାଏ ଲୋ ॥

ଭଣ୍ଡିକରି ଗଲା ଜୀବ ବାହୁଡ଼ି ନଇଲା । ବଳରାମ ପରମଯେ ଛାଡ଼ିକରି ଗଲା ॥ ଜୀବଯେ ପରମ ସ୍ଥାନ ଭ୍ରମର ଗୁମ୍ଫାରେ । ଭକ୍ତ-ଜନମାନଙ୍କର ସୁଖ ଦେହୁଠାରେ ॥ ଡାହାଣ ଚକ୍ଷୁରେ ଜୀବ ପରମ ବାଟେଣ । ତେଣୁକରି ଭ୍ରମର ଗୁମ୍ଫାବୋଲି ଜାଣ ॥ ଭ ଅକ୍ଷର ଅର୍ଥ ଯେତେ ପଚାରିଲ ବୀର । ପଦେ ପଦେ କରି ତୋତେ କହିଲି ନିକର ।

କୋଇଲି ମଥୁରାକୁ ଯିବା କି ମୁଁ ଧାଇଁ ।
ମାଧବ ମଧୁସୂଦନ ଆଣିବ କହାଇ ଲୋ ॥

ମଧୁପୁର ବାଟେ ଯହୁଁ ଜୀବ ଛାଡ଼ିଗଲା । ପରମ ଜୀବର ଅଉ ଦେଖା ଯେ ନୋହିଲା ॥ ମୁଖବାଟେ ଜୀବ ଯହୁଁ ବାହାର ହୁଅଇ । ମଧୁପୁର ବୋଲି ତେଣୁ ମୁଖଟି ବୋଲାଇ । ମୁକୁନ୍ଦର ନାମ ବ୍ରହ୍ମଜ୍ଞାନଟି ଅଟଇ । ଶୁଣିକରି ଅର୍ଜୁନ ଯେ ପୁଣି ପଚାରଇ ॥

କୋଇଲି ଯିବେ ସେ ଆସିବେ ବୋଲି ଗଲେ ।
ଜଗତଜୀବନ କୃଷ୍ଣ ବେଢ଼ାଏ ନଇଲେ ଲୋ ॥

ଯାଉଁଳି କବାଟ ପାର୍ଥ ନାସାକୁଟି କହି । ଜୀବର ଆହାର ପାର୍ଥ ପବନ ଅଟଇ ॥ ଜଗତ ଜୀବନ କୃଷ୍ଣ ଛାଡ଼ିକରି ଗଲା । ଯାଉଁଳି କବାଟ ପାର୍ଥ ନିଷ୍ଫଳ ହୋଇଲା ॥ ଜାଣିକରି ଯୋଗି ଜନେ ସେହି ଦ୍ୱାରେ ଭଜ । ନିଷ୍ଟଳେ ପାଇବ ଭେଟ

ମହାମହିଗଜ ॥ ଯ ଅକ୍ଷର ଅର୍ଥ ଏବେ ଶୁଣିଲ ଅର୍ଜୁନ । କାର୍ପଣ୍ୟ ହୋଇଣ ପୁଣ କହଇ ବଚନ ॥

କୋଇଲି ରତ୍ନ ବସ୍ତ୍ର ଅଳଙ୍କାର ମାନ ।
ରାମ କୃଷ୍ଣ ଶ୍ରୀଅଙ୍ଗକୁ ଧରଣେ ଶୋଭିବନ ଲୋ ॥

ରତ୍ନ ବୋଲିକର ପାର୍ଥ ପଚାରିଲେ ଯାହା । ପଦ ପଦ କରି ମୋତେ କହିଦେବା ତାହା ॥ ପାଣ୍ଡୁ କୁ ଯେ ବୋଲି ନାମରତ୍ନ ବୋଲି ତାହା । ବ୍ରହ୍ମା ବେଦରର ଅଣି ପ୍ରଭୁକାର କୁହା ॥ ରାମନାମ ପରମ ଯେ କୃଷ୍ଣ ନାମ ରାମ । ଶୋଭିଦଶେ ଏ ପିଣ୍ଡକୁ ଦୁଇଗୋଟି ନାମ ॥ ଶୁଣିକରି ଅର୍ଜୁନ ଯୋଡ଼ଇ ବେନିକର । ଲକ୍ଷ୍ମୀରବଲ୍ଲଭ ନାଥ ମୋତେ ଦୟାକର ॥

କୋଇଲି ଲକ୍ଷ୍ମୀର ବଲ୍ଲଭ ନାରାୟଣ ।
ଇନ୍ଦ୍ରିୟେଣ ନାମଦେଲେ ଗାର୍ବେ ବ୍ରାହ୍ମଣ ଲୋ ॥

ଲକ୍ଷ୍ମୀପତି ନାରାୟଣ ଶୂନ୍ୟରେ ମିଶିଲେ । ରାମପଦ ଗୋଟି ପଦ ନଶବନ୍ଦ ହେଲେ ॥ ରାମ ପାଦ ଚଳିଗଲେ ମଥୁରା ପୁରକୁ । ଶୂନ୍ୟ ହୋଇଗଲେ ଜୀବ ମର୍ତ୍ତ୍ୟ ଭବନକୁ ॥ ଲ ଅକ୍ଷରର ଅର୍ଥ ଶୁଣ ଫାଲଗୁନ । ପିଣ୍ଡ ଯେ ବ୍ରହ୍ମାଣ୍ଡ ମୋତେ ଭେଟାଇଲ ଅଣି ॥

କୋଇଲି ବୃନ୍ଦାବନ ନ ଶୋଭଇ ମୋର ।
ବଂଶୀ କଏ ଚରାଇବ ଯମୁନାର ତୀର ଲୋ ॥

ବିନମ୍ରହୋଇଣ ପୁଣ ପାର୍ଥ ପଚାରଇ । ବ ଅକ୍ଷର ଅର୍ଥ ମୋତେ କହ ଭିକରାହୀ ॥ ବୃନ୍ଦାବନ ଗୋଟା ପାର୍ଥ ଦେହକୁଟି କହ । ବଂଶୀ ବୋଲିକରି ପାର୍ଥ ପ୍ରକୃତି ଅଟଇ । ପିଣ୍ଡରୁ ପରମ ଜୀବ ଅନ୍ତର ହୋଇଲେ । ବୃନ୍ଦାବନ ତେଣୁକରି ଅଶୋଭା ଦିଶିଲେ ॥ ବ ଅକ୍ଷର ଅର୍ଥ ଶୁଣି ଅର୍ଜୁନ ସନ୍ତୋଷ । କୃଷ୍ଣର ହୋଇଣ ପୁଣି କହେ କୃଷ୍ଣଦାସ ॥

କୋଇଲି ଶ୍ରୀମନ୍ତ ପୁରୁଷ ମୋ ମାଧୋଇ ।
ଶିଶୁରଙ୍ଗ ଗଲ୍ପଦନୁ ନନ୍ଦହେଲେ ବାଇ ଲୋ ॥

ଶ୍ରୀନୀଳକନ୍ଦର ପାର୍ଥ ଜୀବର ଅୟନ । ଶ୍ରୀମନ୍ତ ପୁରୁଷ ଗଲେ ପିଣ୍ଡ ହୁଏ ଲୀନ ॥ ନୀଳ ଯେ ମାଧବ ରୂପ କଣ୍ଠ ମଧ୍ୟେ ଥିଲା । ବ୍ରହ୍ମା ଶିବ ଦେବ ପ୍ରାଣ ସେହୁ ଛାଡ଼ିଗଲା । ମୃତ୍ୟୁ ପିଣ୍ଡ କରି ଜୀବ ଛାଡ଼ିକରି ଗଲା । ନନ୍ଦର ପରମଜୀବ ଛାଡ଼ି ଚଳିଗଲା ॥

କୋଇଲି ସାତଦିନ ଇନ୍ଦ୍ର ବୃଷ୍ଟି କଲା ।
ସପତବରଷ ପୁନ୍ନ ନନ୍ଦର ଧଇଲା ଲୋ ॥

ସପତ ଖଣ୍ଡରେ ପିଣ୍ଡ ପ୍ରାଣ ଛାଡଯାଇ । ତେଣୁକରି ସାତଦିନ ଶାସ୍ତ୍ରେ ଅଛି କହି ॥ ସାତବାର ଭିତରେ ଏ ଅଠତାଳ ହୋଇ । ସପତ ବରଷେ ପାର୍ଥ ବ୍ରହ୍ମଜ୍ଞାନ ପାଇ ॥ ଜଳରୁ ଜନ୍ମଇପିଣ୍ଡ ଜଳରେ ଯେ ନାଶ । ସପତ ଦଣ୍ଡରେ ପାର୍ଥ ଯୋଗଇ ଆକାଶ ॥ ଶୁଣିକରି ଅର୍ଜୁନ ଯେ ହୋଇ ଦିବ୍ୟ ତୋଷ । ସ ଅକ୍ଷର ଅର୍ଥ ମୋତେ କହ ପୀତବାସ ॥

କୋଇଲି ଶଶୀ ଯେସନେ ଦିନୁ ଦିନୁ କ୍ଷୀଣ
ସେହିପରି କ୍ଷୀଣ ହେଲେ ନନ୍ଦ ଯେ ସ୍ୱଜନ ଲୋ ॥

ଶଶୀ ଚନ୍ଦ୍ର ଯେସନେ ପାର୍ଥ ଆକାଶରେ ଥାଇ । କଳଙ୍କ ମିଶିଲେ ସେ ଯେ ନାଶହିଁ ନ ପାଇ । ପିଣ୍ଡରେ ଥାଇଣ ଜୀବ ସେହିମତ ନାଶ । ପ୍ରକୃତିପୁରୁଷମାନେ ବେଢିଛନ୍ତି ପାଶ ॥ ଶଶୀପ୍ରାପ୍ତହେଲେ ପିଣ୍ଡବାହାର ହୁଅଇ । ଏକମନେ ଶୁଣ ତୁହେ ଯୁଧିଷ୍ଠିର ଭାଇ ॥

କୋଇଲି ହାଇ ଯେ ମାରଇ ପୁଅ ତୁଣ୍ଡ ।
ହୃଦରେ ଦେଖିଲେ ମାଏ ସପତ ବ୍ରହ୍ମାଣ୍ଡ ଲୋ ॥

ହରଷ ହୋଇଣ ପୁଣ ପାର୍ଥ ପଚ୍ଛୁରଇ । ହ ଅକ୍ଷର ଅର୍ଥ ମୋତେ କହ ଭାବଗ୍ରାହୀ ॥ ହରିହର ବ୍ରହ୍ମା କେହୁ ରଖି ନପାରନ୍ତି ହରଷ ହୋଇଣ ଜୀବ ପରମେ କହନ୍ତି । ହରିନାମ ଭଜିଥିଲେ ବ୍ରହ୍ମଜ୍ଞାନ ପାଇ । ଅଶେଷ ବ୍ରହ୍ମାଣ୍ଡ ପାର୍ଥ ହରିନାମ କହୁ ॥

କୋଇଲି ଖଣ୍ଡଣି ବଣ୍ଡଣି ଭୁଜ ଦଣ୍ଡ ।
କ୍ଷମା କର ଦୋଷ ମୋର ଭଣେ ମାର୍କଣ୍ଡ ଲୋ ।

ଖଣ୍ଡଣୀ ଯେ ବୋଲଯାଏ ମାୟାଜନ୍ତୁଙ୍କର । କ୍ଷମା ଯେ କରୁଣାନିଧି ଏଥିର ବିଚାର ॥ ଦୁଷ୍ଟଜନମାନଙ୍କୁ ସେ ଦଣ୍ଡ ଦେବାପାଇଁ ପିଣ୍ଡେ ଯେ ବ୍ରହ୍ମାଣ୍ଡ ଏକ କରଣ ବୁଝାଇ । ଅର୍ଜୁନ ପଚ୍ଛୁରିଲେ ଶ୍ରୀହରି ଅର୍ଥ କଲେ । ଜଗନ୍ନାଥ ଦାସ ଏହା ପୁରାଣେ କହିଲେ । କେଶବକୋଇଲି ଅର୍ଥ ବ୍ରହ୍ମଜ୍ଞାନ ସାର । ଲବଣୀସାଗରୁ ଏ ଯେ ହୋଇଛି ବାହାର ॥ ସାଧୁଜନମାନେ ମୋର ନ ଧରିବ ଦୋଷ ଶ୍ରୀମୁଖରେ ଆଜ୍ଞା ଯାହା ଦେଲେ ପୀତବାସ ॥

ସ ମା ପ୍ତ

---

ମୁଦ୍ରାକର—ଶ୍ରୀ ବିଶ୍ୱମ୍ଭର ପରିଡ଼ା ପ୍ରଜ୍ଞାଚକ୍ଷୁ ପ୍ରେସ
କଟକ—୧୯୫୭

# ବିଜ୍ଞାପନ

ନିମ୍ନଲିଖିତ ପୁସ୍ତକମାନ ଆମ୍ଭ ନିକଟରେ ସର୍ବଦା ଗଚ୍ଛିତ ଥାଏ ।
ଅଗ୍ରିମ ପଠାଇ ପୁସ୍ତକ ମଗାଇଲେ ଅଧିକ କମିଶନ ଦିଆଯିବ ।

---

| | | | |
|---|---|---|---|
| ଛାନ୍ଦରତ୍ନାକର | ଟ ୧ । | ବିଲଙ୍କା ରାମାୟଣ | ଟ ୧ । |
| ଲକ୍ଷ୍ମୀପୁରାଣ | ଟ ୦। | ଭାଗବତ ୨ ସେଟ | ଟ ୧୦୲ |
| ଅଙ୍ଗଦପଦ | ଟ ୦।/ | ଗଙ୍ଗାମାହାତ୍ମ୍ୟ | ଟ ୦ ୴ |
| ଅଶ୍ୱମେଧଯଜ୍ଞ | ଟ ୦ ।/ | କାର୍ତ୍ତିକ ମହାତ୍ମ୍ୟ | ଟ ୧୲ |
| ଭୂତକେଳି | ଟ ୦ ।/ | ପଞ୍ଚଶାଖା ଭଜନ | ଟ ୦ ୳ |
| ଲାବଣ୍ୟନିଧି | ଟ ୦ ୵ | ସୁଦଶାବ୍ରତ କଥା | ଟ ୦ ୵ |
| ଲକ୍ଷ୍ମଣ ଶକ୍ତିଭେଦ | ଟ ୦ ୵ | ଅମର କୁମର | ଟ ୦ ୳୵ |
| ହିନାଥ ମେଳା | ଟ ୦ ୵ | ବସ୍ତ୍ର ପୁରାଣ | ଟ ୦ ୳୵ |
| ନଦୀୟାସଙ୍କୀର୍ତ୍ତନ ୧ସେ | ଟ ୧୲ | ହନୁ ଅର୍ଜ୍ଜୁନ କଳି | ଟ ୦ ୵ |
| ସହଜ ଇଂରାଜୀ ଶିକ୍ଷା | ଟ ୦ ।/ | ତଅପୋଇ ଓଷା | ଟ ୦ ୶ |
| ଖୁଲଣା ସୁନ୍ଦରୀ | ଟ ୧ । | କାନ୍ଦଣା ଲହରୀ | ଟ ୦ ୳ |
| ଗୋଲକୁଞ୍ଜ ଚଉପଦୀ | ଟ ୦ । | ରକ୍ତଲୋଭୀ ନିଶାଚର | ଟ ୧ । |
| ପ୍ରଭାତ ଅବକାଶ | ଟ ୦ ୵ | ହାଇଦ୍ରାବାଦ ଷଡ଼ଯନ୍ତ୍ର | ଟ ୧ । |
| ରାଧାକୃଷ୍ଣ ମିଳନ | ଟ ୦ ୵ | ଲଭଲ୍ ଲେଡି (ଉପନ୍ୟାସ) | ଟ ୨୲ |
| ରାଧାକୃଷ୍ଣ ଦାମ୍ପିକା | ଟ ୦/୬ | ମଧୁରାତ ,, | ଟ ୧୳ |
| ବୃହତ୍ ନାମରତ୍ନ ଗୀତା | ଟ ୧୳ | ଅଭିମାନ ,, | ଟ ୧୳ |
| କୋଟୀବ୍ରହ୍ମାଣ୍ଡ ସୁନ୍ଦରୀ | ଟ ୦ ୳ | ରୂପର ଅତିଥି ,, | ଟ ୧୳ |

ଓଡ଼ିଶା ଜଗନ୍ନାଥ କମ୍ପାନୀ
ବାଲୁବଜାର
ପୋଃ ଅଃ ଚାନ୍ଦନୀଚୌକ, କଟକ

ପ୍ରୋପ୍ରାଇଟର
ଶ୍ରୀ ଜଗନ୍ନାଥ ସିଂହ